ISSN: 2456-9194, Vol. I, Issue. IV, March 2018


# ପ୍ରତ୍ୟୟ

**(Journal of Odia Language, Culture and Science)**

JournalHomepage:http://cphfs.in/research.php


# 'ଲାବଣ୍ୟବତୀ'ରେ ଉପେନ୍ଦ୍ର ଭଞ୍ଜଙ୍କ କବିତ୍ୱ


ପ୍ରଫେସର ନୀଳାଦ୍ରି ଭୂଷଣ ହରିଚନ୍ଦନ

ଅବସରପ୍ରାପ୍ତ ପ୍ରଫେସର, ଓଡ଼ିଆ ବିଭାଗ,

ବିଶ୍ୱଭାରତୀ, ଶାନ୍ତିନିକେତନ

କେ-୩, କଳିଙ୍ଗ ବିହାର, ଭୁବନେଶ୍ୱର – ୨୯

ଇ-ମେଲ୍: nbharichandan@gmail.com

ମୋବାଇଲ : ୭୩୭୭୩୩୯୯୩୭


ଉପେନ୍ଦ୍ର ଭଞ୍ଜଙ୍କ କବିତ୍ୱକୁ ଯଥାର୍ଥ ଭାବେ ଚିହ୍ନିବା ପାଇଁ ଏ ପର୍ଯ୍ୟନ୍ତ କୌଣସି ଦୃଷ୍ଟିଆକର୍ଷଣକାରୀ ଉଦ୍ୟମ କରାଯାଇନାହିଁ । ଯେଉଁମାନେ ତାଙ୍କ କାବ୍ୟକୃତି ଉପରେ ଆଲୋଚନା କରିଆସୁଛନ୍ତି, ସେମାନଙ୍କ ଭିତରୁ ଅଧିକାଂଙ୍କର 'କବିତ୍ୱ' ସମ୍ପର୍କରେ ଧାରଣା ସ୍ୱଷ୍ଟ ନୁହେଁ । ଶବ୍ଦଶିଳ୍ପକୁ କବିତ୍ୱଭାବେ ବିଚାରିଥିବାରୁ ଉପେନ୍ଦ୍ର ଭଞ୍ଜଙ୍କ ପ୍ରକୃତି କବିତ୍ୱ ନିକଟରେ ପହଞ୍ôଚବା ସେମାନଙ୍କ ପକ୍ଷରେ ସମ୍ଭବ ହୋଇନାହିଁ । ବର୍ଷର ଗୋଟିଏ ନିର୍ଦ୍ଦିଷ୍ଟ ସମୟ ଭଞ୍ଜ ଜୟନ୍ତୀ ପାଳନ ଅବସରରେ ବିଭିନ୍ନ ସ୍ଥାନରେ ଉଦ୍ଧୃତି ଦେଇ ଲମ୍ଫଝମ୍ପ ପୂର୍ବକ ବକ୍ତୃତା କରି ଶ୍ରୋତାମାନଙ୍କୁ ମୁଗ୍ଧ କରିବାର ଚେଷ୍ଟା କରିଥାନ୍ତି । କିନ୍ତୁ ବକ୍ତୃତା ପ୍ରସଙ୍ଗରେ ସେମାନେ ଦେଉଥିବା ଉଦ୍ଧୃତିଗୁଡ଼ିକୁ ପରୀକ୍ଷା କଲେ ଜଣାଯିବ ଯେ ସେଗୁଡ଼ିକ କେବଳ ଧ୍ୱନି-ମାଧୁର୍ଯ୍ୟପୂର୍ଣ୍ଣ ଏବଂ ଶ୍ରବଣ ସୁଖଦାୟକ, ହୃଦୟର ନିବିଡ଼ ଭାବାନୁଭୂତିକୁ ଉଦ୍ବୋଧିତ କରିବାର ଶକ୍ତି ସେମାନଙ୍କର ନାହିଁ । । ଏପରି ବକ୍ତା ବା ସମାଲୋଚକମାନଙ୍କ ଦ୍ୱାରା ଉପେନ୍ଦ୍ର ଭଞ୍ଜଙ୍କ ଅସାଧାରଣ ଶବ୍ଦଯୋଜନା ଓ ଶବ୍ଦ ନିର୍ମାଣ କୌଶଳ ପରି କାବ୍ୟଶିଳ୍ପର ଗୌଣ ଦିଗଟି କେବଳ ଉନ୍ମୋଚିତ ହୁଏ, ପ୍ରଧାନ ହୃଦୟସମ୍ବେଦୀ ଭାବଜଗତଟି ଉଦ୍ଭାସିତ ହୁଏ ନାହିଁ । ବହୁ ପାଠକ ଓ ସମାଲୋଚକ ଭଞ୍ଜୀୟ ପ୍ରତିଭା ପ୍ରତି ସପ୍ରଶଂସ ଥିଲାବେଳେ କେତେକ ଉପେନ୍ଦ୍ର ଭଞ୍ଜଙ୍କର କବିତ୍ୱ ଶକ୍ତି ସମ୍ପର୍କରେ ସନ୍ଦେହ ପ୍ରକାଶ କରି ତାଙ୍କର କାବ୍ୟ କେବଳ ଦୁର୍ବୋଧ, କ୍ଲିଷ୍ଟଶବ୍ଦାବଳୀ ପରିପୂର୍ଣ୍ଣ ବୋଲି କହିଥାନ୍ତି । ପ୍ରକୃତପକ୍ଷେ ଭଞ୍ଜ କବିତାରେ ଭାବସାବଲ୍ୟ ଅପେକ୍ଷା ଶବ୍ଦାଡ଼ମ୍ବରମୟତା ସହଜ ଲକ୍ଷ୍ୟ । ତେବେ ତାଙ୍କର କାବ୍ୟଦୃଷ୍ଟିକୁ କୌଣସି ପ୍ରକାରେ କବିତ୍ୱ କଳାବିବର୍ଜିତ ବୋଲି କହି ହେବ ନାହିଁ।

ଆଳଙ୍କାରିକ କାବ୍ୟ ସୃଷ୍ଟି ଲାଗି ଭଞ୍ଜଙ୍କ ଉତ୍ସାହ ଏକ ଭ୍ରାନ୍ତ ଉତ୍ସାହ ହୋଇପାରେ କିମ୍ବା ଏକ ରାଜପୁତ୍ରୋଚିତ ଅହଂକାର ହୋଇପାରେ, କିନ୍ତୁ ସେ ଯେ ଦୁଇ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଓଡ଼ିଆ ସାହିତ୍ୟ ଜଗତରେ ଆଳଙ୍କାରିକ କାବ୍ୟର ଏକ ବିରାଟ ସାମ୍ରାଜ୍ୟ ପ୍ରତିଷ୍ଠା କରିପାରିଛନ୍ତି, ଏକଥା ଅସ୍ୱୀକାର କରିହେବ ନାହିଁ । ବସ୍ତୁତଃ ଏହି ସାମ୍ରାଜ୍ୟର ଐଶ୍ୱର୍ଯ୍ୟ ହିଁ ମଧ୍ୟକାଳୀନ ଭାରତୀୟ ସାହିତ୍ୟ କ୍ଷେତ୍ରରେ ଓଡ଼ିଆ ଆଳଙ୍କାରିକ ସାହିତ୍ୟକୁ ଏକ ସମ୍ମାନଜନକ ଆସନ ପ୍ରଦାନ କରିଛି । ଭଞ୍ଜଙ୍କ ବ୍ୟକ୍ତିତ୍ୱର ଏକ ଅନମନୀୟ ସତ୍ତା ତାଙ୍କୁ ସଂସ୍କୃତି ସାହିତ୍ୟ ସହ ସମସ୍ପର୍ଦ୍ଧୀ ହେବାକୁ ଉତ୍ସାହ ପ୍ରଦାନ କରିଛି । ଭଞ୍ଜୀୟ କାବ୍ୟରେ ସଂସ୍କୃତର ସମସ୍ତ ପ୍ରକାର ଅଳଙ୍କାର ଓ କାବ୍ୟ କୌଶଳର ପ୍ରୟୋଗ ଓଡ଼ିଆ ସାହିତ୍ୟକୁ କରିଛି ଗୌରବବିଭୂଷିତ । ଏହାଦ୍ୱାରା କିନ୍ତୁ ଓଡ଼ିଆ ସାହିତ୍ୟ ଯେତିକି ଲାଭବାନ ହୋଇଛି, ସେତିକି ପରିମାଣରେ କ୍ଷତିଗ୍ରସ୍ତ ହୋଇଛି ମଧ୍ୟ ।

ସାରଳା ଦାସଙ୍କ ସମୟରୁ (୧୫ଶ ଶତାବ୍ଦୀରୁ) ଓଡ଼ିଆ ଭାଷା ଯେଉଁ କାବ୍ୟିକ ସୌକୁମାର୍ଯ୍ୟ ଓ ସ୍ୱଚ୍ଛନ୍ଦତା ଲାଭ କରିଆସିଥିଲା, ତାହା ଆଳଙ୍କାରିକ କାବ୍ୟ ଯୁଗରେ ସଂପୂର୍ଣ୍ଣ ବାଧାପ୍ରାପ୍ତ ହେଲା । ଓଡ଼ିଆ ଭାଷା ଓ କାବ୍ୟିକ ଚିନ୍ତାର ବିକାଶ ଅଧିକ ପରିମାଣରେ ପ୍ରସାରଣଶୀଳ ହେବା ପରିବର୍ତ୍ତେ ପଶ୍ଚାତଦ୍ଗାମୀ ହୋଇପଡ଼ିଲା । ସାରଳା ଦାସଙ୍କ ପରି ଚିନ୍ତାଗତ ସ୍ୱାଧୀନତା ନ ଥିବା ହେତୁ ଉପେନ୍ଦ୍ର ଭଞ୍ଜଙ୍କ ଦୃଷ୍ଟି ଏକ ସୀମିତ ଜଗତ ଭିତରେ ଆବଦ୍ଧ ରହିଲା । ସାରଳା ଦାସଙ୍କ ଦିଗନ୍ତପ୍ରସାରୀ ଦୃଷ୍ଟିକୁ ସ୍ୱଚ୍ଛ ପରିମାଣରେ ଅନୁସରଣ କରିଥିଲେ କିମ୍ବା ଦୀନକୃଷ୍ଣଙ୍କ ପରି ନିର୍ମଳ କବିତ୍ୱ ଆଚରଣ କରିଥିଲେ ଭଞ୍ଜ ଓଡ଼ିଆ ସାହିତ୍ୟକୁ ହୁଏତ ଏକ ବିରାଟ ଉଚ୍ଚତାକୁ ପହଞ୍ଚାଇ ଦେଇପାରିଥାନ୍ତେ । ସେହିପରି ମହତ୍ ପ୍ରତିଭାର ଅଧିକାରୀ ଥିଲେ ସେ । କିନ୍ତୁ ରାଜପରିବାରେ ଜନ୍ମଗ୍ରହଣ କରିଥିବାରୁ ଏକ ପ୍ରତିଭାବାନ କବିର ବ୍ୟାପକ ଦୃଷ୍ଟି ବହୁ ପରିମାଣରେ ସଙ୍କୁଚିତ ହୋଇପଡ଼ିଛି । ରାଜ ଦରବାରର ଆଡ଼ମ୍ବରପୂର୍ଣ୍ଣ କାବ୍ୟବିକାଶ ଏବଂ ଦରବାରାଶ୍ରିତ ସଂସ୍କୃତ କବି ପଣ୍ଡିତଙ୍କ ପ୍ରଭାବ ତାଙ୍କର କାବ୍ୟ ଭାବନାକୁ ନିୟନ୍ତ୍ରିତ କରିବା ସଂଗେ ସଂଗେ କବିର ସ୍ୱାଧୀନତାକୁ ଯେ ଖର୍ବ କରିଛି, ଏକଥା ନିଶ୍ଚିତ । ଓଡ଼ିଆ ଭାଷାରେ ଯଥେଷ୍ଟ ଦକ୍ଷତା ଥିବା ସତ୍ତ୍ୱେ ସ୍ୱକୀୟ କାବ୍ୟ ଭାବନାର ପ୍ରକାଶ

ଲାଗି ସେ ସଂସ୍କୃତ ଭାଷାକୁ ପ୍ରାଧାନ୍ୟ ଦେଇଛନ୍ତି । ସଂସ୍କୃତ ଆଳଙ୍କାରିକ କାବ୍ୟଶୈଳୀକୁ ଆଦର୍ଶ ରୂପେ ଗ୍ରହଣ କରିବା ହିଁ ଏହାର ମୂଳ କାରଣ ।

ସଂସ୍କୃତ ସାହିତ୍ୟର ଦୁଇଟି କାବ୍ୟଶୈଳୀ ମୁଖ୍ୟତଃ ମଧ୍ୟଯୁଗୀୟ କାବ୍ୟଭାବନାକୁ ପ୍ରଭାବିତ କରିଛି । ଏ ଦୁଇଟି ଶୈଳୀ ମଧ୍ୟରୁ ଗୋଟିଏ ହେଉଛି ଶ୍ରୀହର୍ଷ, ମାଘ ପ୍ରବର୍ତ୍ତିତ ଆଳଙ୍କାରିକ ଶୈଳୀ ଏବଂ ଅନ୍ୟଟି କାଳିଦାସ ପ୍ରବର୍ତ୍ତିତ ସ୍ୱଭାବସିଦ୍ଧ ଭାବପ୍ରଧାନ ଶୈଳୀ । ରଘୁବଂଶ କାବ୍ୟର ଆରମ୍ଭରେ ନମସ୍କ୍ରିୟା ଅଂଶରେ କାଳିଦାସ ନିଜର କାବ୍ୟଶୈଳୀ ସମ୍ପର୍କରେ ସୂଚନା ପ୍ରଦାନ କରିଛନ୍ତି 'ବାଗର୍ଥ' ଶବ୍ଦକୁ ବ୍ୟବହାର କରି । ('ବାଗର୍ଥାବିବ ସଂପୃକ୍ତୌ ବାଗର୍ଥ ପ୍ରତିପତ୍ତୟେ ଜଗତଃ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ) ବାକ୍ ସହିତ ଅର୍ଥର ନିବିଡ଼ ସଂଯୋଗ ଘଟିଲେ ଉତ୍ତମ କାବ୍ୟ ସୃଷ୍ଟି ସମ୍ଭବ । ବାକ୍ ବା କାବ୍ୟବାଣୀ ଅର୍ଥପୂର୍ଣ୍ଣ ବା ଭାବମୟ ହେବା ସର୍ବାଦୌ ଆବଶ୍ୟକ । ଭାବ ବିନା କାବ୍ୟବାଣୀ ପାଠକର ହୃଦୟକୁ ରସାଭିଭୂତ କରିପାରେ ନାହିଁ । କାଳିଦାସଙ୍କ ରଚନା ଆଜି ସମଗ୍ର ବିଶ୍ୱମାନବ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଥିବାବେଳେ ଶ୍ରୀହର୍ଷ ମାଘ ଆଦି ଆଳାଙ୍କାରିକ କବିମାନଙ୍କ ରଚନାର ପ୍ରଭାବ ନାହିଁ । କାରଣ ଉଚ୍ଚକୋଟୀର ଭାବ ହିଁ କବିତାକୁ ଚିରନ୍ତନତା ପ୍ରଦାନ କରିବାକୁ ସମର୍ଥ । ଭଞ୍ଜକବି କାଳିଦାସୀୟ ମାର୍ଗକୁ ଅନୁସରଣ ନ କରି ଶ୍ରୀହର୍ଷୀୟ ମାର୍ଗକୁ ଅନୁସରଣ କରିଥିବା ହେତୁ କାବ୍ୟଭାଷାକୁ ଅକାରଣ କ୍ଲିଷ୍ଟକରି ପକାଇଛନ୍ତି । ସରଳ ସାବଲୀଳ ଭାଷା ଅଭାବରେ ନିର୍ମଳ କବିତ୍ୱର ସ୍ଫୁରଣ ଘଟିପାରିନାହିଁ । ନିର୍ମଳ କବିତ୍ୱ ପ୍ରକାଶ ପାଇଁ ଯେଉଁ ମାନସିକ ସ୍ୱାଧୀନତା ଆବଶ୍ୟକ, ତାହା ସଂକୁଚିତ ହୋଇପଡ଼ିଛି ଗୋଟିଏ ନିର୍ଦ୍ଦିଷ୍ଟ କାବ୍ୟ ନିମୟ ବନ୍ଧନ ଭିତରେ ରହି । ଅଥଚ ଅଳଙ୍କାର ଯୁଗର ଅନ୍ୟତମ ଶ୍ରେଷ୍ଠକବି ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ର ବହୁ ଅଂଶରେ କବିତ୍ୱର ସ୍ୱଚ୍ଛ ପ୍ରକାଶ ଘଟିଛି ।

ଉପେନ୍ଦ୍ର ଭଞ୍ଜଙ୍କର ଶ୍ରେଷ୍ଠ କାବ୍ୟ ଭାବରେ 'ଲାବଣ୍ୟବତୀ' ସୁଧୀସମାଜ ଦ୍ୱାରା ସ୍ୱୀକୃତି ଲାଭ କରିଆସିଛି । ବିଷୟ କଳ୍ପନା, ଅଳଙ୍କାର ଯୋଜନା, କାବ୍ୟ ଭାଷା ପ୍ରୟୋଗ ଏବଂ ଭାବାନୁଭୂତି ପ୍ରକାଶର ସ୍ୱାତନ୍ତ୍ର୍ୟ ଏହାର ମୁଖ୍ୟ କାରଣ । ଉପେନ୍ଦ୍ର ଭଞ୍ଜ କେବଳ ଏହି ଧର୍ମୀୟନିଗଡ଼ମୁକ୍ତ କାବ୍ୟ 'ଲାବଣ୍ୟବତୀ'ରେ ହିଁ ସ୍ୱକୀୟ ଭାବାଦର୍ଶ ଉପସ୍ଥାପନ କରିଛନ୍ତି । ଭଞ୍ଜଙ୍କର କାବ୍ୟ ବିଚାର ଲାଗି ଏହା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଭଞ୍ଜ ତାଙ୍କର ଆଦର୍ଶକୁ ସାମଗ୍ରିକ କାବ୍ୟସୃଷ୍ଟିରେ କେତେ ଦୂର ରକ୍ଷା କରିପାରିଛନ୍ତି ବା କରିପାରିନାହାନ୍ତି, ତାହାର ବିଚାର ଲାଗି ଏହାକୁ ଆକାର ଗ୍ରନ୍ଥଭାବେ ଗ୍ରହଣ କରାଯିବା ଉଚିତ୍ । ଏହି ପ୍ରବନ୍ଧରେ ଉପେନ୍ଦ୍ର ଭଞ୍ଜଙ୍କ କବିତ୍ୱ ବିଚାର କଲାବେଳେ ପ୍ରୋକ୍ତ କାବ୍ୟଗ୍ରନ୍ଥଟିକୁ ହିଁ କେବଳ ଆଧାର ଭାବେ ଗ୍ରହଣ କରାଯାଇଛି।

ଦୁର୍ଭାଗ୍ୟର ବିଷୟ ଯେ 'ଲାବଣ୍ୟବତୀ' କାବ୍ୟର ପରିକଳ୍ପନା କବି ଯେପରି ଭାବେ କରିଥିଲେ, ତାହା ସାର୍ଥକ ରୂପାୟନ ଲାଭ କରିପାରିନାହିଁ । ତାହା ହୋଇଥିଲେ ଏହା ଓଡ଼ିଆ କାବ୍ୟଜଗତରେ ଏକ ଚରମ ଉତ୍କର୍ଷମୟ ଶିଳ୍ପ ସୃଷ୍ଟି ଭାବେ ପରିଗଣିତ ହୋଇଥାନ୍ତା । ତଥାପି ଯେତିକି ପରିମାଣରେ ଏହା ସାର୍ଥକତା ଲାଭ କରିପାରିଛି, ତାହାହିଁ ଏ କାବ୍ୟର ଶ୍ରେଷ୍ଠତା ପ୍ରତିପାଦକ । କାବ୍ୟର ମୁଖବନ୍ଧ ସ୍ୱରୂପ ପ୍ରଥମେ ଛାନ୍ଦଟି 'ଲାବଣ୍ୟବତୀ'ର ଶ୍ରେଷ୍ଠ ଅଂଶ । ଏହି ଛାନ୍ଦରେ ହିଁ ଭଞ୍ଜଙ୍କ ଯଥାର୍ଥ କବିତ୍ୱ ଶକ୍ତିରେ ପରିଚୟ ମିଳେ । କାବ୍ୟ ଅନ୍ତର୍ଗତ କେତୋଟି ପଦ ପାଠକର ଭାବଜଗତକୁ ଗଭୀର ଭାବେ ଆଲୋଡ଼ିତ କରିବାର ସମାର୍ଥ୍ୟ ରଖେ । ଏହିପରି ନିବିଡ଼ ରସାନୁଭୂତି ସୃଷ୍ଟିକ୍ଷମ ସାବଲୀଳ ପଦଯୋଜନା ଅନ୍ୟ ଛାନ୍ଦଗୁଡ଼ିକରେ କାହିଁକି ରହିପାରିଲା ନାହିଁ, ତାହାହିଁ ବିସ୍ମୟର କଥା । ବୋଧହୁଏ କବି ସଂସ୍କୃତ ଆଳଙ୍କାରିକ କାବ୍ୟରୀତି ଓ ଭାଷାଶିଳ୍ପ ପ୍ରତି ଦୁର୍ବଳତାକୁ ଅନ୍ୟ ଛାନ୍ଦଗୁଡ଼ିକର ରଚନା କାଳରେ ସମ୍ବରଣ କରିପାରିନାହାନ୍ତି ।

ଭଞ୍ଜୀୟ କବିତ୍ୱର ନିରୂପଣ କରି 'ଲାବଣ୍ୟବତୀ' ପ୍ରଥମ ଛାନ୍ଦର ପ୍ରାରମ୍ଭରେ ଉପସ୍ଥାପିତ କାବ୍ୟାଦର୍ଶକୁ ପରୀକ୍ଷା କରିବାର ଅବକାଶ ରହିଛି । ଚାରିଧାଡ଼ି ବିଶିଷ୍ଟ କାବ୍ୟାଦର୍ଶ ଅଂଶଟି ଏହିପରି –

"ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିଚାରଇ
ଏଣୁ କରିଥିବ ଅଳଙ୍କାର ଯୁକ୍ତ ହୋଇ
ପଦ ସରଳ ଧ୍ୱନିରେ ମାନସ ନୋହିବ
ଅର୍ଥୀଜନ ପ୍ରକରକୁ ଆନନ୍ଦ କରିବ ।"

ଏହାହିଁ ପ୍ରକୃତପକ୍ଷେ କବିଙ୍କର କାବ୍ୟଯୋଜନା ସମ୍ପର୍କିତ ଅକୃତ୍ରିମ ବାଣୀ । କବି ପ୍ରଥମତଃ ଚାହିଁଛନ୍ତି ମୃଦୁଗୀତ ରଚନା କରିବାକୁ, ଯାହାର ଅର୍ଥ ସରଳ ପଦ୍ୟ ରଚନା । ମୂଳତଃ ସରଳ, ସୁକୁମାର ଭାଷାରେ ଆପଣାର ଅଭିବ୍ୟକ୍ତିକୁ ପ୍ରକାଶ କରିବା ଥିଲା କବିଙ୍କର ଲକ୍ଷ୍ୟ । କବି ହୃଦୟର ବାର୍ତ୍ତା ସରଳ ଭାଷାରେ ଅଭିବ୍ୟକ୍ତ ଲାଭ କରି ପ୍ରତିଯୁଗରେ ପାଠକମାନଙ୍କ ସ୍ଥିର ରସସମୁଦ୍ରକୁ ସହଜରେ ଉଦ୍ବେଳିତ କରିଆସିଛି । ଏଇ ମୁହୂର୍ତ୍ତରେ କବିର ବ୍ୟକ୍ତିଗତ ଭାବନା ବିଶ୍ୱଜନର ଭାବନାରେ ରୂପାନ୍ତରିତ ହୋଇଯାଏ । ଗଭୀର ଅନୁଭବକୁ ସରଳ ଭାଷାରେ ଯେପରି ମାର୍ମିକ ଭାବେ ପ୍ରକାଶ କରାଯାଇପାରିବ, ତାହା ଅନ୍ୟଥା ସମ୍ଭବ ନୁହେଁ । ପୁଣି ଏହିସବୁ ଗୀତକୁ ସେ ଚାହିଁଛନ୍ତି ମୂର୍ତ୍ତିମନ୍ତ ଭାବେ ପ୍ରକାଶ କରିବାକୁ । କବିର ଭାବନାକୁ କାବ୍ୟ ସୌନ୍ଦର୍ଯ୍ୟ ପ୍ରକାଶକ କରିବାକୁ ହେଲେ କାବ୍ୟଚିତ୍ରର ଆବଶ୍ୟକତା ରହିଛି । ବିଭିନ୍ନ ଚିତ୍ର ରଚନା ବା ସାଦୃଶ୍ୟ କଳ୍ପନା ଦ୍ୱାରା କାବ୍ୟ ମୂର୍ତ୍ତିମନ୍ତ ହୋଇ ପାଠକର ମାନସ ରାଜ୍ୟରେ ଠିଆ ହୋଇଥାଏ ଏବଂ ତାକୁ ଅଭିଭୂତ କରେ । ଚମତ୍କାର ଉପମା, ଶବ୍ଦଚିତ୍ର ଏବଂ ବିବିଧ ଅଳଙ୍କାରର ପ୍ରୟୋଗରେ ହୃଦୟସ୍ପର୍ଶୀ ତଥା ଆଡ଼ମ୍ବରହୀନ ଆତ୍ମସ୍ୱାଧୀନ ଭାଷାରେ କାବ୍ୟ ଭାବନାକୁ ପ୍ରକାଶ କରିବା ଥିବା ତାଙ୍କ ମୂଳ ଆଦର୍ଶ ।

କାବ୍ୟ ନାୟିକାର ସୌନ୍ଦର୍ଯ୍ୟ ବୃଦ୍ଧିକରେ ଯଥା ସ୍ଥାନରେ ସନ୍ନିବିଷ୍ଟ ସ୍ୱଳ୍ପ ଅଳଂକାର । ଅଳଂକାର ଭାର ଦୁର୍ବହତା କାବ୍ୟର ଯଥାର୍ଥ ସୌନ୍ଦର୍ଯ୍ୟ କ୍ଷୁଣ୍ଣ କରିଥାଏ । ଭାବ ହିଁ କବିତାର ପ୍ରାକୃତିକ ଶୋଭା ବିଧାନ କରେ, ଅଳଂକାର କେବଳ ବାହ୍ୟ ଭୂଷଣ ମାତ୍ର । ଆତ୍ମାର ଶୋଭାକୁ ପରିବର୍ଦ୍ଧନ କରିବାର ଶକ୍ତି ଏହାର ନାହିଁ । ବାହ୍ୟ ଅଙ୍ଗର ଶୋଭା ବୃଦ୍ଧିକାରୀ ଅଳଂକାରର ଆଧିକ୍ୟ ଯେ କାବ୍ୟ-ସୌନ୍ଦର୍ଯ୍ୟର ପରିପନ୍ଥୀ, ଏହା ଭଞ୍ଜଙ୍କ ଭଳି କୁଶଳୀ ଶିଳ୍ପୀର ନିଶ୍ଚୟ ଜଣାଥିଲା । ପୁଣି ଅଳଙ୍କାର ପ୍ରଧାନ କାବ୍ୟ କଦାପି ମୃଦୁକାବ୍ୟ ବା ସରଳ ପଦସମ୍ବଳିତ କାବ୍ୟ ହୋଇନପାରେ । ଏ ସମ୍ପର୍କରେ ଭଞ୍ଜଙ୍କର ଯେ ମୂଳରୁ ସଚେତନତା ଥିଲା, ତାହା ସ୍ୱୀକାର୍ଯ୍ୟ ।

ତୃତୀୟ ଧାଡ଼ିରେ କବି କହିଛନ୍ତି - ପଦ ସରଳ ଧ୍ୱନିରେ ମାନସ ମୋହିବ ଏହି ପଦସରଳ ଶବ୍ଦଯୁଗ୍ମ ମୃଦୁଗୀତ ଶବ୍ଦର ପରିପୂରକ । ସରଳ ପଦ ଯୋଜନା ଦ୍ୱାରା ହିଁ ମୃଦୁଗୀତ ବା କୋମଳ କବିତା ସୃଷ୍ଟି ସମ୍ଭବ । ସରଳ ଅଭିବ୍ୟକ୍ତି ଲାଗି ଯେ କବି ବିଶେଷ ଆଗ୍ରହୀ, ଏହା ତାଙ୍କର ବକ୍ତବ୍ୟରୁ ସ୍ପଷ୍ଟ ।

'ପଦ ସରଳ ଧ୍ୱନିରେ ମାନସ ମୋହିବ' ଧାଡ଼ିରେ ଧ୍ୱନି ସମ୍ପର୍କିତ ସୂଚନା ରହିଛି । ଯେଉଁମାନେ ଧ୍ୱନି ଶବ୍ଦକୁ ପଦ ସରଳ ସହିତ ସମନ୍ୱିତ କରି ସରଳ ଧ୍ୱନିର ଅର୍ଥ ଖୋଜିବାକୁ ଚାହିଁବେ, ସେମାନେ ନିଶ୍ଚୟ ନିରାଶ ହେବେ । କବିଙ୍କ ଉଦ୍ଦେଶ୍ୟ ହେଉଛି ଧ୍ୱନିରେ ମାନସ ମୋହିବା । ଏ ଧ୍ୱନି କାବ୍ୟାଧ୍ୱନି ହୋଇପାରେ କିମ୍ବା ଶ୍ରୁତିଧ୍ୱନି ହୋଇପାରେ ।

କାବ୍ୟର ସାର୍ଥକତା ନିହିତ ଥାଏ, କାବ୍ୟଧ୍ୱନି ବା କାବ୍ୟ ବ୍ୟଞ୍ଜନାରେ । ଅଭିଧାନ ବାହାରେ କାବ୍ୟ ପଂକ୍ତି ଯେଉଁ ବ୍ୟଙ୍ଗାର୍ଥ ବା ଚମତ୍କାର ଅର୍ଥଟି ପ୍ରକାଶ କରିଥାଏ, ତାହାହିଁ ପାଠକ ପ୍ରାଣକୁ ଅଭିଭୂତ ଓ ଆହ୍ଲାଦିତ କରେ । କାବ୍ୟଧ୍ୱନି ହିଁ କେବଳ ପାଠକର ମନସକୁ ମୋହିବାକୁ ସମର୍ଥ । ପୁଣି ଏହି ମାନସ ଶବ୍ଦଟି ସ୍ଥାନରେ ପାଠାନ୍ତରରେ ଶ୍ରବଣ ଶବ୍ଦଟି ପ୍ରଯୁକ୍ତ ହୋଇଥିବାର ଦେଖାଯାଏ । ଏଠାରେ ଧ୍ୱନିର ଅର୍ଥ ହେବ ଶ୍ରବଣ ରସାୟନ ଧ୍ୱନି । ଭଞ୍ଜ ଶବ୍ଦ ଯୋଜନାର ଚମତ୍କାରିତାରେ ଯେଉଁ ଶ୍ରୁତି ମାଧୁର୍ଯ୍ୟର ସୃଷ୍ଟି କରିଛନ୍ତି, ତାହା ଅନନ୍ୟ । ତାଙ୍କର ବହୁ କବିତାର ଅର୍ଥବୋଧ ନ ଘଟିଲେ ମଧ୍ୟ ସେଗୁଡ଼ିକର ଶ୍ରୁତି ସୁଖଦାୟକ ସାଙ୍ଗୀତିକ ଗୁଣଟି ପାଠକ ଚିତ୍ତକୁ ଆହ୍ଲାଦିତ କରିଥାଏ । ଭଂଜୀୟ କବିତା ଉଭୟ କାବ୍ୟଧ୍ୱନି ଓ ଶ୍ରୁତି ଧ୍ୱନିରେ ପୁଷ୍କଳ ଏବଂ ଉଭୟ ମାନସ ଓ ଶ୍ରବଣ ମୋହକାରୀ ।

କାବ୍ୟାଦର୍ଶ ସମ୍ପର୍କିତ ଶେଷ ଧାଡ଼ିଟି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଭଞ୍ଜଙ୍କ କବିତାରେ ପ୍ରଧାନ ଉଦ୍ଦେଶ୍ୟ ଅର୍ଥୀଜନପ୍ରକରକୁ ଆନନ୍ଦ କରିବା । ଭାବଗ୍ରହଣ ତତ୍ପର ସହୃଦୟ ରସିକ ହୃଦୟରେ ଆନନ୍ଦ ସଂଚାର କରିବାରେ ହିଁ କବିତାର ସାର୍ଥକତା – ଏ କଥାଟିକୁ ଭଂଜ ଭଲଭାବରେ ବୁଝିଥିଲେ । କାଳିଦାସଙ୍କ 'ବାଗର୍ଥ' ଶବ୍ଦର ତାତ୍ପର୍ଯ୍ୟ ଏବଂ ଉପେନ୍ଦ୍ରଙ୍କ 'ଅର୍ଥୀ' ଶବ୍ଦର ତାତ୍ପର୍ଯ୍ୟରେ ବିଶେଷ ପାର୍ଥକ୍ୟ ନାହିଁ । ପାଠକ ଦ୍ୱାରା କାବ୍ୟର ଭାବୋପଲବ୍ଧି ବା ରସାନୁଭୂତି ନ ଘଟିଛି କବିତ୍ୱର ସ୍ଥାୟିତ୍ୱ ସମ୍ଭବ ନୁହେଁ । ଚିରନ୍ତନ କବିକର୍ମ ଲାଗି କବିର କାବ୍ୟଗୁଡ଼ିକ ରସୋଦ୍ରେକକାରୀ ହେବା ଉଚିତ । ଏକ ସର୍ବକାଳୀନ ଭାବରେ ବିଶ୍ୱନାଥଙ୍କ 'କାବ୍ୟଂ ରସାତ୍ମକଂ କାବ୍ୟମ୍' ଏ କ୍ଷେତ୍ରରେ ସ୍ମରଣୀୟ ।

ଆମେ ଲକ୍ଷ୍ୟ କରୁ ଯେ ଉପେନ୍ଦ୍ର ଭଞ୍ଜଙ୍କ ମହତ୍ ଉଦ୍ଦେଶ୍ୟ ସର୍ବତ୍ର ପାଳିତ ହୋଇ ନାହିଁ । ପ୍ରଥମ ସ୍ଥାନ ପରେ ଅଳଂକାର ନିର୍ମାଣ କୌଶଳ ଓ ଶବ୍ଦ ଗୁମ୍ଫନ ଚାତୁର୍ଯ୍ୟ ପ୍ରତି ସେ ଏତେ ବେଶି ଅନୁରକ୍ତ ହୋଇପଡ଼ିଛନ୍ତି ଯେ ତାଙ୍କର 'ମୃଦୁଗୀତ ରଚନା' ଓ ସରଳ ପଦ ଯୋଜନା ପରି ଘୋଷଣାମାନ ବିସ୍ମୃତ ହୋଇଯାଇଥିବା ପରି ମନେହୁଏ । ତଥାପି ମଝିରେ ମଝିରେ ସ୍ୱତଃସ୍ଫୂର୍ତ୍ତ ଭାବେ କେତୋଟି ଭାବୋଦ୍ଦୀପକ, ଚିର ଉଲ୍ଲାସକାରୀ ସରଳ ଭାଷାପ୍ରଯୁକ୍ତ ପଂକ୍ତି କବି ଲେଖନୀରୁ ନିଃସୃତ ହୋଇପଡ଼ିଛି । ସେଗୁଡ଼ିକ ହିଁ ଭଂଜୀୟ କବିତ୍ୱର ଯଥାର୍ଥ ନିଦର୍ଶନ । ଏଠାରେ 'ଲାବଣ୍ୟବତୀ' ପ୍ରଥମ ଛାନ୍ଦାନ୍ତର୍ଗତ ବାଞ୍ଛାବତୀ କନ୍ୟା ନିର୍ବାସନ ଓ ପ୍ରଣୟାବେଗ ପ୍ରକଟନ ବର୍ଣ୍ଣନା ଭିତରେ କିପରି ସୁକୁମାର କବିତ୍ୱ ବିକସିତ, ପ୍ରଥମ ଛାନ୍ଦର "ହର ନେତ୍ରପଥଗତ ହେଲେ ଏ ଶୋଭାଂଗୀ, ଯିବ ସିନା ମୋହର ସୁଭାଗୀପଣ ଭାଙ୍ଗି ।" ପଦଟିରେ ପୁରୁଷର ସୁନ୍ଦରୀ ନାରୀ ପ୍ରତି ସ୍ୱାଭାବିକ ଆସକ୍ତିକୁ ଅଭିବ୍ୟକ୍ତ କରାଯାଇଛି । ମାନସ କନ୍ୟା ଶୋଭାଙ୍ଗୀ ବାଞ୍ଛାବତୀ ପ୍ରତି ଶିବ ହଠାତ୍ ଆସକ୍ତ ହୋଇଯାଇପାରନ୍ତି ଭାବି ପାର୍ବତୀ ଆଶଙ୍କିତା । କାରଣ ଏପରି ଘଟିଲେ ତାଙ୍କର ସୋହାଗୀପଣ ଭାଙ୍ଗିଯିବ । ଏଠାରେ ପାର୍ବତୀ ଓ ଶିବଙ୍କୁ ଜଗନ୍ମାତା ଓ ମହାଦେବ ରୂପେ ଚିତ୍ରଣ କରାନଯାଇ ସାଧାରଣ ମଣିଷ ଭାବେ ଚିତ୍ରଣ କରାଯାଇଛି । ସ୍ୱାମୀ କୌଣସି ନାରୀ ପ୍ରତି ଆସକ୍ତ ହୋଇପଡ଼ିଲେ ସ୍ତ୍ରୀର ସୋହାଗୀପଣ ତୁଟିଯାଏ – ଏହା ଏକ ସ୍ୱାଭାବିକ ଘଟଣା । ଏପରି ଏକ ଘଟଣାର ଆଶଙ୍କାରେ ଆଶଙ୍କିତା ପାର୍ବତୀଙ୍କ ଭାବନାଟି ସହଜ କବିତ୍ୱର ପ୍ରକାଶକ । ଯଥାର୍ଥରେ 'ଯିବ ସିନା ମୋହର ସୁହାଗୀପଣ ଭାଙ୍ଗି' ପଦଟିରେ ସମାଜର ଗୋଟିଏ ହୃଦୟ ବିଦରାକ ଚିତ୍ର ଉଦ୍ଭାସିତ ହୋଇପଡ଼େ । ଏ ପଦଟିର ଟୀକା କଲାବେଳେ ପଣ୍ଡିତ ନୀଳକଣ୍ଠ ଦାସ ଲେଖିଛନ୍ତି – "ମହାଦେବଙ୍କୁ ଏପରି କାମାସକ୍ତ ଓ ବହୁନାରୀରତ ବୋଲି କଳ୍ପନା କରି ପାର୍ବତୀ ଈର୍ଷାନ୍ୱିତ ହେବା ହିନ୍ଦୁଧର୍ମର ଆଦର୍ଶସିଦ୍ଧ ନୁହେଁ ।" ଅବଶ୍ୟ ମହାଦେବଙ୍କର ଅନ୍ୟ ନାରୀ ପ୍ରତି କାମାସକ୍ତିର ଚିତ୍ର କୌଣସି କାବ୍ୟ ପୁରାଣରେ ବର୍ଣ୍ଣିତ ହୋଇ ନାହିଁ । ତେଣୁ ଉପେନ୍ଦ୍ର ଭଞ୍ଜଙ୍କ ଉଦ୍ଦେଶ୍ୟ ଏଠାରେ ଭିନ୍ନ ହୋଇପାରେ । ମନସ୍ତାତ୍ତ୍ୱିକ କାରଣରୁ ପୁରୁଷ ତା'ର ସୁନ୍ଦର ଝିଅ ପ୍ରତି ସମସ୍ତ ସ୍ନେହ ଶ୍ରଦ୍ଧା ଢାଳିଦିଏ । ଫଳରେ ସ୍ତ୍ରୀ ପ୍ରତି ସ୍ନେହର ଭାଗ ବହୁତ ଊଣା ହୋଇଯାଏ । ଏପରି କ୍ଷେତ୍ରରେ କନ୍ୟା ପ୍ରତି ସ୍ତ୍ରୀର ଈର୍ଷା ସ୍ୱାଭାବିକ । ସୁନ୍ଦରୀ ବାଞ୍ଛାବତୀ ପାର୍ବତୀଙ୍କର ମାନସ କନ୍ୟା ହୋଇଥିବାରୁ ଶିବଙ୍କର ମଧ୍ୟ ଏହି କନ୍ୟା ସନ୍ତାନ ପ୍ରତି ଅନୁରକ୍ତି ସ୍ୱାଭାବିକ । ସ୍ୱାମୀର କନ୍ୟ ପ୍ରତି ବିଶେଷ ଅନୁରକ୍ତି ପ୍ରକାଶ ପାଇଲେ ସ୍ତ୍ରୀ ନିଜକୁ ଅବହେଳିତା ମନେ କରେ । ଏଠାରେ ଏପରି ଏକ ଅର୍ଥବୋଧର ସମ୍ଭାବନା କରାଯାଇପାରେ । 'ହର ନେତ୍ର ପଥଗତ ହେଲେ ଏ ଶୋଭାଙ୍ଗୀ' ଭଳି ପଦଯୋଜନା ଭିତରେ ଖୁବ୍ କମ୍ ଶବ୍ଦରେ ଗୋଟିଏ ପୂର୍ଣ୍ଣାଙ୍ଗ ଚିତ୍ର ପ୍ରଦାନ କରାଯାଇଛି । ଏହା ମଧ୍ୟ କବି ଚାତୁରୀର ଏକ ଦିଗ । ଦୁଇଟି ପାଦ ମଧ୍ୟରେ ଏକ ସ୍ୱାଭାବିକ ସମାଜ ଚିତ୍ରର ଅକୃତ୍ରିମ ଉପସ୍ଥାପନ କବିତ୍ୱର ନିଦର୍ଶନ ନିଶ୍ଚୟ ।

ପାରମ୍ପରିକ ରୀତିରେ ବାଞ୍ଛାବତୀର ରୂପବର୍ଣ୍ଣନା (ଚନ୍ଦ୍ରକୁ ନିନ୍ଦା କରୁଛି ମୁଖ ହାସକାନ୍ତି, ସାରଙ୍ଗକୁ ନିନ୍ଦୁଛି ନୟନ ଭ୍ରୁରୁ ଗତି) ପାଠକ ହୃଦୟକୁ ବିଶେଷ ସ୍ପନ୍ଦିତ କରିପାରୁ ନାହିଁ । କିନ୍ତୁ ପରବର୍ତ୍ତୀ ଦୁଇ ପଦରେ ସୌନ୍ଦର୍ଯ୍ୟର ଏକ ହୃଦୟଗ୍ରାହୀ ଛବି ପରିସ୍ଫୁଟ ହୋଇଉଠେ ।

"ଅମର ସମ୍ପତ୍ତି ଲଭି ବିଲୋକନ ମାତ୍ରେ
ନାରୀ ରୂପ ପିତୁଳା ଲେଖନ ହେଲା ନେତ୍ରେ ।
ସେ ପ୍ରେମ ମଞ୍ଜରୀ ଶୋଭା ପଞ୍ଜରୀ ହୋଇଲା
ପୁଂସନେତ୍ର ଖଂଜରୀଟ ତହିଁରେ ରହିଲା ।"

ଦିବ୍ୟ ନାରୀ ଶ୍ରଦ୍ଧାରେ ପଞ୍ଚାଗ୍ନି ସାଧନା କରିଥିବା ଯୁବକ ପ୍ରଭାକର ଯେଉଁ ନାରୀଟିକୁ ସାରାଜୀବନ ଧରି ଅପେକ୍ଷା କରୁଥିଲା, ହଠାତ୍ ତାକୁ ଅକଳ୍ପିତ ଭାବେ ପାଇଯିବା ଅମର ସମ୍ପତ୍ତି ପ୍ରାପ୍ତିଠାରୁ କଦାପି କମ୍ ନୁହେଁ । ସେଇ ନାରୀକୁ ଚରମ ବିସ୍ମୟରେ ନିର୍ନିମେଷ ନୟନରେ ଚାହିଁ ରହିଚି ପ୍ରଭାକର, ଯାହାର ପ୍ରତିଛବି ପଡ଼ିଛି ନାରୀଟିର ଆଖିରେ । ଏହି ବୈଜ୍ଞାନିକ ତଥ୍ୟଟି କାବ୍ୟିକ ବ୍ୟଞ୍ଜନାରେ ପ୍ରକାଶିତ ହୋଇଛି – "ନାରୀ ରୂପ ପିତୁଳା ଲେଖନ ହେଲା ନେତ୍ରେ ।" ପ୍ରଭାକରରେ ମୁଗ୍ଧ ବିସ୍ଫାରିତ ଦୃଷ୍ଟିରେ ପରମ ସୁନ୍ଦରୀ ନାରୀର ମୂର୍ତ୍ତି ଯେପରି ଲିପିବଦ୍ଧ ହୋଇଯାଇଛି ଚିରନ୍ତନ କାଳ ଲାଗି । ଏଇ ସମୟରେ ପ୍ରେମ ମଂଜରୀ ବାଞ୍ଛାବତୀ ଶୋଭା ପଞ୍ଜରୀରେ ରୂପାନ୍ତରିତ ହୋଇଯାଇଛି । ନାରୀଟିଏ ପ୍ରଥମଥର ପାଇଁ ଜଣେ ସୁନ୍ଦର ପୁରୁଷର ମୁଗ୍ଧ ଦୃଷ୍ଟିକୁ ଦେଖିବା ଭିତରେ ତା' ପ୍ରତି ଗଭୀର ଭାବେ ପ୍ରେମାସକ୍ତ ହୋଇପଡ଼ିବା ସ୍ୱାଭାବିକ । ଏହାହିଁ ପ୍ରଥମ ଦୃଷ୍ଟି ବିନିମୟରେ ଯୁବକଯୁବତୀଙ୍କ ଭିତରେ ପ୍ରଣୟ ସଂଚାର । ଯେଉଁ ନାରୀ ହୃଦୟରେ ପ୍ରଥମ ପ୍ରେମ ମଂଜରିତ ହୋଇଉଠେ, ତାକୁ ପ୍ରେମମଞ୍ଜରୀ କହିବା ଯଥାର୍ଥ । ସେଇ

ପ୍ରେମମଞ୍ଜରୀ ପୁଣି ହୋଇଛି ଶୋଭାର ପଞ୍ଜରୀ ଯେ ପୁଂସ ନେତ୍ର ଖଞ୍ଜରୀଟକୁ ବନ୍ଦୀ କରି ରଖିପାରେ । ନିର୍ମମ ଲୌହ ପଞ୍ଜରୀ ଭିତରେ ଅଭିଶପ୍ତ ପକ୍ଷୀଟିଏ ଆବଦ୍ଧ ହୋଇ ଜୀବନର ସମସ୍ତ ସୁଖ ଓ ସ୍ୱାଧୀନତା ହରାଇ ଦୁର୍ବହ ଜୀବନଯାପନ କରେ । ଏଠାରେ କିନ୍ତୁ କବିଙ୍କର ପଞ୍ଜରୀ ଏକ ଶୋଭାପଞ୍ଜରୀ ଏକ ସୌନ୍ଦର୍ଯ୍ୟ ନିକେତନ, ଯେଉଁଠି ପୁରୁଷ ନିଜେ ବନ୍ଦୀ ହୋଇ ରହିବାକୁ ଚାହେଁ ଚିରକାଳ । ଦୃଷ୍ଟି ସହିତ ମନର ସମ୍ପର୍କ ନିବିଡ଼ । ଦୃଷ୍ଟିପାତ ଭିତରେ ପୁରୁଷ ନିଜର ମନକୁ ଅର୍ପଣ କରିଦିଏ ନାରୀକୁ । କବିଙ୍କର ପ୍ରଭାକରର ମୁଗ୍ଧ ଦୃଷ୍ଟିକୁ ପଞ୍ଜରୀର ପକ୍ଷୀ ସହିତ ତୁଳନା କରିବା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରଭାକରର ଦୃଷ୍ଟି ପୁଂସନେତ୍ର ବା ପୁରୁଷର ନେତ୍ର । ସୌନ୍ଦର୍ଯ୍ୟର ଅନ୍ୱେଷଣରେ, ପୁରୁଷର ପିପାସୁ ଦୃଷ୍ଟି ନିରନ୍ତର ଭ୍ରମଣ କରୁଥାଏ । ଏହା କଦାପି ଏକ ନିର୍ଦ୍ଦିଷ୍ଟ ସୌନ୍ଦର୍ଯ୍ୟର ଆଧାର ଉପରେ ସ୍ଥିର ହୋଇ ରହିଯାଏ ନାହିଁ – ଯେପରି ଚିରଚଞ୍ଚଳ ଖଞ୍ଜରୀଟ ପକ୍ଷୀ ବା କଜଳପାତି କୌଣସି ଗୋଟିଏ ସ୍ଥାନରେ ସ୍ଥିର ହୋଇ ବସିରହେ ନାହିଁ, ଗୋଟିଏ ସ୍ଥାନରେ କ୍ଷଣଟିଏ ବସିବା ପରେ ଉଡ଼ିଯାଏ ଅନ୍ୟ ଏକ ସ୍ଥାନରେ ବସିବାକୁ । ପୁରୁଷ ଆଖିରେ ଚଞ୍ଚଳତା ସହିତ ଖଞ୍ଜରୀଟ ପକ୍ଷୀର ଅସ୍ଥିରତା ଭିତରେ ଯେପରି ଗୁଣଗତ ସାମଞ୍ଜସ୍ୟ ଅଛି । ଖଞ୍ଜରୀଟ ପରି ଅସ୍ଥିର ପକ୍ଷୀ କଦାପି ପିଞ୍ଜରା ଭିତରେ ଆବଦ୍ଧ ହୋଇ ରହିପାରେ ନାହିଁ । କିନ୍ତୁ ଏ କ୍ଷେତ୍ରରେ ପୁରୁଷର ନେତ୍ର ଖଞ୍ଜରୀଟ ସୌନ୍ଦର୍ଯ୍ୟର ଅନୁପମ ଆଧାରଟି ଉପରେ ସ୍ଥିର ହୋଇ ରହିଯାଇଛି ।

ପୁଣି ନାୟିକାର ପ୍ରେମପୂର୍ଣ୍ଣ ନେତ୍ର ତୁଳିତ ହୋଇଛି ବଡ଼ଶୀ ସହିତ, ଯାହା ପୁରୁଷର ମନ ମୀନକୁ ଏପରି ଭାବେ ଧରିନିଏ ଯେ, ସେଥିରୁ ତା'ର ଆଉ ମୁକ୍ତି ନାହିଁ । ନାୟକର ମନ ମୀନକୁ ନାୟିକା କେବଳ ଧରି ନେଇ ନାହିଁ, ତାକୁ ପକାଇ ଦେଇଛି ଉରଜ କୁବେଣୀରେ ଅର୍ଥାତ୍ ବକ୍ଷୋଜ ରୂପକ ଖାଳେଇରେ । ଆଖିର ବନ୍ସୀରେ ପୁରୁଷ ମନର ମାଛଟିକୁ ଆକର୍ଷିତ କରି ହୃଦୟର ଖାଳେଇ ଭିତରେ ବନ୍ଦୀ କରି ରଖି ଦେଇଛି ନାୟିକା ।

"ନେତ୍ର ବଡ଼ସୀରେ ସେ ଧଡ଼ସି ଅନୁରାଗେ
ପୁରୁଷ ମନ ମୀନକୁ ଧରି ନେଲା ବେଗେ ।"

ନାରୀର ସୌନ୍ଦର୍ଯ୍ୟରେ ବନ୍ଦୀ ହୋଇଯାଇଥିବା ପୁରୁଷଟି ପକ୍ଷରେ ବର୍ତ୍ତମାନ ନାରୀର କରୁଣା ପାଇଁ ଆକୁଳ ନିବେଦନ କରିବା ଛଡ଼ା ଅନ୍ୟ ଗତି ନାହିଁ । ପ୍ରାର୍ଥନାରେ ସ୍ୱୀକୃତି ସ୍ୱରୂପ ନାୟିକାର ସାମାନ୍ୟ ସ୍ମିତହାସ୍ୟଟି ହିଁ ତା' ପାଇଁ ପରମ ଆକାଂକ୍ଷିତ ବସ୍ତୁ । ଏହି ଚିରନ୍ତନ ସତ୍ୟଟିକୁ କବି ପ୍ରକାଶ କରିଛନ୍ତି ଦରହସିତେ ଈଷିତେ ସଫଳ ତୁ କର' ପାଦଟିର । ଏହାର ପରବର୍ତ୍ତୀ ପଦ 'ଏ ବଚନ ସୀଉକାର କଟାକ୍ଷେ ଆଣିଲା / ରସିକା ଭଜିଲା ଭାବ ରସିକ ଜାଣିଲା'ରେ ଦୁଇ ହୃଦୟ ମିଳନର ଏକ ଚମତ୍କାର ଚିତ୍ର ଉଭିନ୍ନ ହୋଇଉଠିଛି ।

ପୁଣି, କନ୍ଦର୍ପ ସହିତ ପ୍ରଭାକରର ଅନୁଚ୍ଚାରିତ ଆଳାପ - 'ତାକୁ ସ୍ତୁତି କଲା, ତୋ ନାରୀର ବାଞ୍ଛା ମୋର, ଭାବି କି ହେଉଛୁ ପର ଏ ଆନ ପ୍ରକାର' ନାଟକୀୟ ଓ ଚାତୁର୍ଯ୍ୟମୟ । କବିତାରେ ନାଟ୍ୟୋଚିତ ସଂଳାପର ପ୍ରୟୋଗ କାବ୍ୟରସକୁ ନିବିଡ଼ କରି ତୋଳେ । ବାଞ୍ଛାବତୀ ସହ ପ୍ରଭାକରର ଚତୁରାକ୍ଷ ମିଳନ ଚିତ୍ରଟି ବଡ଼ କାବ୍ୟୈଶ୍ବର୍ଯ୍ୟମୟ । ପ୍ରଭାକର ସମଗ୍ର ଜୀବନର ତପସ୍ୟାକୁ ସଫଳ କରି ଦିବ୍ୟ ସୁନ୍ଦରୀ ବାଞ୍ଛାବତୀ ଯେତେବେଳେ ଚାହିଁ ଦେଇଛି ତା' ଆଡ଼େ, ତା'ର ମନେ ହୋଇଛି 'ଜହ୍ନ ଅନ୍ଧ ନୟନକୁ ଲଭିଲେ ଯେମନ୍ତ' । କି ଚମତ୍କାର କବି କଳ୍ପନା, ବାଞ୍ଛାବତୀର ଅପରୂପ ସୌନ୍ଦର୍ଯ୍ୟ ପ୍ରକାଶ ଲାଭ କରିଛି ଅପୂର୍ବ କାବ୍ୟ ବ୍ୟଞ୍ଜନା ଭିତରେ ।

"ଏ କାଳେ ପୁରୁଷଠାରେ ରାମାଦୃଷ୍ଟିପାତ
ଜହ୍ନ ଅନ୍ଧ ନୟନକୁ ଲଭିଲେ ଯେମନ୍ତ ।"

ସାରା ଜୀବନ ଧରି ପୃଥିବୀର ବିଚିତ୍ର ରୂପଶୋଭା ଦେଖିବାକୁ ବଞ୍ଚିତ ଜନ୍ମାନ୍ଧଟିଏ ଯେତେବେଳେ ହଠାତ୍ ଦୃଷ୍ଟି ଶକ୍ତି ଲାଭ କରିବ, ତା' ଆଖି ଆଗରେ ଉଦ୍ଭାସିତ ହୋଇଉଠିବ, ପୃଥିବୀର ବିପୁଳ ଶୋଭାରାଶି, ଯାହା ଅଭୂତପୂର୍ବ, ଅଚିନ୍ତନୀୟ । ଏହିପରି ସୌନ୍ଦର୍ଯ୍ୟକୁ ଜୀବନରେ କେବେ ଦେଖିପାରିବ ବୋଲି ଆଶା କରିନଥିବା ଲୋକଟିର ହୃଦୟରେ ଯେଉଁ ଆନନ୍ଦର ଜୁଆର ଉଠିବ, ତାହା ଅବର୍ଣ୍ଣନୀୟ । ଆଜି ପର୍ଯ୍ୟନ୍ତ ପ୍ରଭାକର ଯେଉଁ ସୌନ୍ଦର୍ଯ୍ୟର କଳ୍ପନା କରିଆସିଥିଲା ମନେ ମନେ, ସେଇ ସୌନ୍ଦର୍ଯ୍ୟ ମୂର୍ତ୍ତିମତୀ ହୋଇ ଯେତେବେଳେ ତା' ଆଖି ଆଗରେ ଆସି ଠିଆ ହୋଇଯାଇଛି, ତା'ର ଆନନ୍ଦ ଜନ୍ମାନ୍ଧର ନୟନ ପ୍ରାପ୍ତିଜନିତ ଆନନ୍ଦ ପରି ଅପରିସୀମ । କବିଙ୍କର ଏ ଅପୂର୍ବ ଚିତ୍ରଟିକୁ ହୃଦୟ ଭିତରେ ଅନୁଭବ କରିହେବ ସିନା, ବୁଝାଇ ହେବ ନାହିଁ ।

ପାରମ୍ପରିକ ଉପମା ପ୍ରୟୋଗରେ ନାରୀର ଯଥାର୍ଥ ସୌନ୍ଦର୍ଯ୍ୟ ଫୁଟିଉଠେ ନାହିଁ । ସମଗ୍ର ମଧ୍ୟଯୁଗୀୟ ସାହିତ୍ୟରେ ସଂସ୍କୃତ କାବ୍ୟରୁ ଆହୃତ ନାରୀର ସୌନ୍ଦର୍ଯ୍ୟ ପ୍ରଖ୍ୟାପକ ଉପମାମାନ ବାରମ୍ବାର ବ୍ୟବହୃତ ହୋଇ ସକଳ ନୂତନତ୍ୱ ହରାଇଛି । ଅନେକ ଉପମା କେବଳ ଅଳଂକାର ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ହୋଇପାରେ, କିନ୍ତୁ ଏକ ଅଭିନବ ଭାବୋଦ୍ରେକକାରୀ ଶକ୍ତି ସେଗୁଡ଼ିକରେ ନାହିଁ । ଯେଉଁଠି କବି ପରମ୍ପରାଠାରୁ ଟିକିଏ ଦୂରେଇଯାଇ ଭିନ୍ନ ଚିତ୍ରଟିଏ କଳ୍ପନା କରେ, ସେଇଠାରେ ହିଁ ପ୍ରକାଶ ଘଟେ ସାର୍ଥକ କବିତ୍ୱର । ଉଦାହରଣ ସ୍ୱରୂପ –

"ବିନ୍ଦୁ ବିନ୍ଦୁ ଜଳ ରହିଛି ଚାରୁ କୁଟିଳ ବାଳେ
ତୁଷାର ବୃଷ୍ଟିକି ହୋଇଛି ନବ ତମାଳ ଦଳେ ।" (ଛାନ୍ଦ-୬୬)

କେତେକ ସ୍ଥଳରେ ଏକ ଜୀବନ୍ତ ଆଲେଖ୍ୟ ସୃଷ୍ଟି କରିଥିବା ରସପୂର୍ଣ୍ଣ ସଂଳାପର ସଂଯୋଜନାରେ ବିମଳ କବିତ୍ୱର ସ୍ପର୍ଶ ଲକ୍ଷିତ ହୁଏ –

"ଶୁଣି ରସିକା ରମଣୀ ଯେ ବୋଇଲା, ଏ ଭଙ୍ଗୀକି କେ ପାରିବ
କାହିଁ କଥା ନେଇ କାହିଁ ଲଗାଇବ, ତହିଁ କି ଉତ୍ତର ଥିବ?"

ଉପେନ୍ଦ୍ର ରୂପମୁଗ୍ଧ କବି । ନାରୀର ରୂପବର୍ଣ୍ଣନାରେ ତାଙ୍କର ନିଷ୍ଠା ସର୍ବାଧିକ । କବି ଯେଉଁଠି ଲାବଣ୍ୟମୟୀ ନାରୀର ଗତିଭଙ୍ଗୀ, ଗଠନଭଙ୍ଗୀ ଓ କାର୍ଯ୍ୟକଳାପ ବର୍ଣ୍ଣନା କରିଛନ୍ତି, ସେଠାରେ କବିତା ଉନ୍ନତ କୋଟି ସ୍ପର୍ଶ କରିଛି । ନାରୀର ସୌନ୍ଦର୍ଯ୍ୟପୂର୍ଣ୍ଣ ଭଙ୍ଗୀଟିଏ କବିଙ୍କ ଚିତ୍ର କଳ୍ପନା ଭିତରେ କେତେ ଚମତ୍କାର ହୋଇପାରେ, ତାହା ନିମ୍ନୋକ୍ତ ପଂକ୍ତିକୁ ଅନୁଧ୍ୟେୟ ।

"ଫୁଲାଇ ନାସା ଡୋଳାକୁ ଖେଳାଇ ନେବାର
ମୁଖ ହଲାଇ ଗେହ୍ଲାଇ ଭାଷା କହିବାର ।
ଚିବୁକେ ତର୍ଜନୀ ଦେଇ ହୋଇବାର ଉଭା
ନେତ୍ର ଦେଖିଥିବ କି ଏପରି ଆନ ଶୋଭା ।" (ଛାନ୍ଦ-୮୮)

ଏଠାରେ ଦୀନକୃଷ୍ଣଙ୍କ ନାୟିକାର ଶୋଭା ବର୍ଣ୍ଣନାରେ –

"କଣିଆଇଁ ଚାହୁଁଥିବା ନାସିକା ଫୁଲାଇ
ବହୁ ଥିବ ବକ୍ରବାଣୀ ଅଙ୍ଗ ଗେହ୍ଲାଇ ।"
(ପଦଟିକୁ ସ୍ମରଣ କରାଯାଇପାରେ ।)

କିମ୍ବା

"ମୁଖ ନ ଟେକିଲା ତ୍ରପାତ୍ରାସରେ ।
ହାମ ପ୍ରକାଶିଲା କୃପାବଶରେ ତା ସେହି ଚାତୁରୀ ।
ନୟନେ ମୋର ରହିଅଛି ପୁରି ।" (ଛାନ୍ଦ-୪୧)

ପ୍ରେମିକ ପୁରୁଷ ନିକଟରେ ପ୍ରେମିକଠାରୁ ବଳି ଅଧିକ ନେତ୍ରପ୍ରିୟ କେହି ନାହାନ୍ତି । ପ୍ରେମିକା ବିନା ତା' ପାଇଁ ସମସ୍ତ ଜଗତ ନିଷ୍ପ୍ରାଣ, ରଙ୍ଗହୀନ । ପ୍ରେମିକାର ସମସ୍ତ ଚିନ୍ତା କେବଳ ପ୍ରେମିକାକୁ ନେଇ, ଜଗତର ସମସ୍ତ ଶୋଭାକୁ ତୁଚ୍ଛ କରି ପ୍ରେମିକାର ବିମୋହନ ମୂର୍ତ୍ତିଟି ନିରନ୍ତର ତା' ଆଖି ଆଗରେ ଭାସିଉଠେ । ତା' ମାନସ ଲୋଚନରେ କେବଳ ସେଇ ଜଣକର ପ୍ରତିଛବି ହିଁ ସଂଚରଣଶୀଳ । ପ୍ରେମ ବ୍ୟାପାରର ଏଇ ଚିରନ୍ତନ ସତ୍ୟଟି ପ୍ରକଟିତ କରିବାକୁ ଯାଇ କବି କହିଛନ୍ତି –

"ଯେଣେ ଅନାଇଲେ ତେଣେ ତ ଦିଶିଲା ଜଣେ ସିନା ଚନ୍ଦ୍ରମୁହାଁ।" (ଛାନ୍ଦ-୪୦)

ଉପେନ୍ଦ୍ର କେବଳ ସାଧାରଣ ପ୍ରଚଳିତ ଭାଷାରେ ନୁହେଁ, ତତ୍ସମ ଶବ୍ଦ ପୂର୍ଣ୍ଣ ଭାଷାରେ ମଧ୍ୟ ଲାଳିତ୍ୟପୂର୍ଣ୍ଣ ଶ୍ରୁତିମଧୁର କବିତା ରଚନା କରିଛନ୍ତି । କିନ୍ତୁ ଦୁର୍ଭାଗ୍ୟ ଯେ ଏଇପରି ଶ୍ରୁତି ମଧୁର ଶବ୍ଦ ଯୋଜନା ଭିତରେ ଭାବମାଧୁର୍ଯ୍ୟ ସଂଚାର ଲାଗି ସେ ଅନେକତ୍ର ପ୍ରୟାସ କରିନାହାନ୍ତି । କେବଳ ଶାବ୍ଦିକ ଧ୍ୱନିରେ ସନ୍ତୁଷ୍ଟ ହୋଇ ରହିଯାଇଛନ୍ତି । ଯେଉଁଠାରେ ଭାବପ୍ରକାଶ ଉପରେ ଗୁରୁତ୍ୱ ଦେଇଛନ୍ତି, ସେଠାରେ ସେ ପାଠକର ହୃଦୟ ରାଜ୍ୟକୁ ଅଭିଭୂତ କରିବାକୁ ସମର୍ଥ ହୋଇପାରିଛନ୍ତି । ଯେଉଁଠାରେ ପାଣ୍ଡିତ୍ୟର ଅହଂକାରଜନିତ କ୍ଲିଷ୍ଟ ଅଳଂକାର କଳ୍ପନା ଓ ଆଡ଼ମ୍ବରପୂର୍ଣ୍ଣ ଶବ୍ଦ ଯୋଜନା ଛାଡ଼ି ସାବଲୀଳ ଭାଷାରେ ଆପଣାର ଭାବକଳ୍ପନାକୁ ପ୍ରକାଶ କରିବାକୁ ଯାଇଛନ୍ତି, ସେଇଠାରେ ହିଁ ଯଥାର୍ଥରେ ପରିସ୍ଫୁଟ ହୋଇଛି ନିର୍ମଳ କବିତ୍ୱ । ଦୀନକୃଷ୍ଣଙ୍କ "କବି ହୋଇ କରୁଥିବ ନିର୍ମଳ କବିତ୍ୱ" ବାଣୀଟି ଯେଉଁଠି ତାଙ୍କ ମନ ଭିତରୁ ଅପସାରିତ ହୋଇ 'ଶବ୍ଦ ସାଗର ପାର' ହେବାର ଅହମିକାଟି ଆସିଛି, ସେଠାରେ କବିତ୍ୱ ହୋଇପଡ଼ିଛି ମ୍ଲାନ । ତେବେ କବିଙ୍କର ବିମଳ କବିତ୍ୱ ଖୋଜିବାକୁ ହେଲେ ଆମ୍ଭମାନଙ୍କୁ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟ ନିକଟକୁ ନ ଯାଇ 'ପ୍ରେମ ସୁଧାନିଧି' ପରି କାବ୍ୟ ନିକଟରେ ପହଞ୍ଚିବାକୁ ହେବ ।